# ସବୁଜାଣିଙ୍କ ଦୁଷପେଡ଼ି



- ଲେଖକ : ବିରୂପାକ୍ଷ ହୋତା
- ଚିତ୍ରଶିଳ୍ପୀ : ହରିହର ପାତ୍ର

ନବସାକ୍ଷର ସାହିତ୍ୟମାଳା

# ଯଦୁମଣିଙ୍କ ହସପେଡ଼ି

ବିରୂପାକ୍ଷ ହୋତା

ଚିତ୍ରଶିଳ୍ପୀ
ହରିହର ପାତ୍ର



ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

# ଶିଂଘାଣି ପୋଛା କଥା

ଥରେ ଯଦୁମଣି ଦାଣ୍ଡ ପିଣ୍ଡାରେ ବସିଥାନ୍ତି । ଗଉଡୁଣୀଟିଏ ଦୁଆର ଦୁଆର ବୁଲି ଦହି ବିକୁଥାଏ । ଏଇ ସମୟରେ ଗଉଡୁଣୀ ସୁଁ କରି ଶିଘାଣି ମେଞ୍ଚାଏ ନିଜ ଶାଢ଼ୀ କାନିରେ ପୋଛି ଦେଲା । ଯଦୁମଣିଙ୍କ ନଜରରେ ଏ କଥା ପଡ଼ିଗଲା । ଇସ୍ କି ଅସନା ! ସେ ହଠାତ୍ କହି ପକାଇଲେ "ଆଲୋ ଏ ବେହେରଣୀ, ସେଇ ହାତରେ ପରା ଦହି ଘାଣ୍ଟୁଛୁ । ସେଇ ଲୁଗା କାନିରେ ପୁଣି ଲୋକଙ୍କ ବାସନ ପୋଛୁଛୁ । ସେଥିରେ ଏମିତି ଶିଘାଣିଗୁଡ଼ାକ ପୋଛି କଣ ଭଲ କାମ କଲୁ ?"

ଗଉଡୁଣୀ କି ଆଉ ସମ୍ଭାଳେ ? ସେ ରାଜାଘର ଲଗୁଆଣି । ତାର ବହପ କାହୁଁ ରୁ କ'ଣ ? ତ ମତମ ହୋଇ କହିଲା "ମଲାରେ, ମୋ ଲୁଗା କାନିରେ ମୁଁ ପୋଛିଲି । ଏଥିରେ କା'ର କ'ଣ ଗଲା ?"

ଯଦୁମଣି ଆଉ ଅଧିକ ନ କହି ନିଜ ନାକରୁ ଶିଘାଣି ମେଞ୍ଚାଏ କାଢ଼ି ଗଉଡୁଣୀର ଲୁଗା କାନିରେ ପୋଛିଦେଲେ । ଗଉଡୁଣୀ ତ ରାଗରେ ଏକାବେଳେକେ ନିଆଁ । ଯଦୁମଣିଙ୍କୁ ବନ୍ଧେଇ ନେବ ବୋଲି ଧମକ ଦେଇ ରାଜାଙ୍କ ଛାମୁରେ ଗୁହାରି କଲା । ରାଜା ଯଦୁମଣିଙ୍କୁ ଧରି ନେବା ପାଇଁ ଡ଼ଗର ପଠାଇଲେ । ଦରବାରରେ ହାଜର ହୋଇ ଯଦୁମଣି ହାତ ଯୋଡ଼ି କହିଲେ—

"ମଣିମା, ମୁଁ ତ କିଛି ଭୁଲକାମ କରିନାହିଁ । ଗଉଡୁଣୀର ପିନ୍ଧାକାନିକୁ ଶିଙ୍ଘାଣି ପୋଛାକନା ଭାବି ମୁଁ ଏହା କରିଛି ।"

ଏ କଥା ଶୁଣି ଦରବାରରେ ସମସ୍ତେ ଠୋ ଠୋ ହସିଲେ । 'ମୋ ଲୁଗାରେ ମୁଁ ଯାହା କଲି' କହିଥିବା ଯୋଗୁ ଗଉଡୁଣୀ ଦଣ୍ଡ ପାଇଲା । ଯଦୁମଣି ଛାଡ଼ ପାଇଲେ ।



## ଖୁମ୍ବ ଆଳୁ

ନୂଆଗଡ଼ ରାଣୀଙ୍କ ଜନ୍ମ ଉତ୍ସବକୁ ସର୍ବରାକାରମାନେ ପନିପରିବା ଯୋଗାଡରେ ଲାଗିଛନ୍ତି । ଯୋଗକୁ ଯଦୁମଣି ସେଦିନ ଗାଁରେ ନ ଥାନ୍ତି । ଏହି ମୌକାରେ ସର୍ବରାକାର ଯଦୁମଣିଙ୍କ ବାଡ଼ିରୁ ଖୁମ୍ବଆଳୁ ତକ ଖୋଳାଇ ନେଲେ ।

ଠିକ୍ ଜନ୍ମ ଉତ୍ସବ ଦିନ ଯଦୁମଣି ଗାଁରୁ ଫେରି ସ୍ତ୍ରୀଙ୍କଠାରୁ ସବୁକଥା ଶୁଣିଲେ । କାହାକୁ କିଛି ନ କହି ଗିନେ ହେବ ତେଲ ସର୍ବାଙ୍ଗ ବୋଳି ହୋଇ ପଡ଼ିଲେ । ଗାମୁଛା ଖଣ୍ଡେ କାନ୍ଧରେ ପକାଇ ସିଧା ଗଡ଼କୁ ଚାଲିଲେ । ଗଲାବେଳେ କେବଳ ଏତିକି କହିଗଲେ—'ଆଜି ସେ ସର୍ବରାକାରକୁ ପାନେ ଦେବେ ।'

ରାଜା ଦେଖି ପଚାରିଲେ, "କହେ। ଯଦୁମଣି । ଏମିତ ସିଧା ସିଧା

କ'ଣ ଗାଧୁଆଗୁଠରୁ ଏଠାକୁ ଆସିଗଲ ?"

ଯଦୁମଣି କହିଲେ, "କଣ କରିବ ମଣିମା, କାଳେ ହେଁ ଶୁଭ କାମରେ ଅଶୁଭ କଛି ଘଟିଯିବ ସେଇଥିପାଇଁ ତରବରରେ ଧାଇଁଛି । ଗାଆଁରେ ନ ଥିଲି । ସକାଳୁ ପହଞ୍ଚି ଶୁଣିଲି ସର୍ବରାକାର ଆଜ୍ଞା ମୋ ବାଡ଼ିରୁ ଖୁମ୍ବିଆଳୁତକ ତାଡ଼ି ଆଣିଛନ୍ତି । ମୋର ସେଥିକି ଆପତ୍ତି ନାହିଁ । ମାତ୍ର ସେ ଆଳୁଗୁଡ଼ାକ ଭଲ ଜାଗାରେ ହୋଇ ନ ଥିଲା । ବାଡ଼ିଆଡ଼େ ଗାତ ଖୋଳି ଆମେ ସମସ୍ତେ ଝାଡ଼ା ଫେରୁ । ଝାଡ଼ାଗୁଡ଼ାକ ମାଟି ବଦଳିଗଲେ ସେଥିରେ ଖୁମ୍ବିଆଳୁ ମଞ୍ଜି ପୋତି ଦେଉ । ସେଇଠି ଆଳୁ ସବୁ ବଢ଼ି ଥିଲା । ସର୍ବରାକାର ନ ଜାଣି ସେଗୁଡ଼ାକ ଖୋଳାଇ ଆଣିଛନ୍ତି । ମନରେ ପାପ ଛୁଇଁଲା । ସେଇ ଆଳୁ ପୁଣି ଦେବତା ବ୍ରାହ୍ମଣଙ୍କ କୃତ୍ୟରେ ଲାଗିବ । ଏଇ ଅଶୁଭ କଥାଟା ଜଣାଇଦେବାକୁ ଆସିଲି ।"

ରାଜା ଯଦୁମଣିଙ୍କ କପଟ ବୁଝିପାରିଲେ ନାହିଁ । ଯଦୁମଣିଙ୍କ କାର୍ଯ୍ୟକୁ ପ୍ରଶଂସା କରି ସର୍ବରାକାରକୁ କାର୍ଯ୍ୟରୁ ଅନ୍ତର କରିଦେଲେ । ତା ପରେ ଯଦୁମଣିଙ୍କୁ ତାଙ୍କ ବାଡ଼ିର ଆଳୁ ସବୁ ବାଛି ନେବାପାଇଁ କହିଲେ ।

ଆଳୁ ଦେହରେ ଲାଗିଲେ କୁଣ୍ଡାଇ ହୁଏ । ସେଥିପାଇଁ ଯଦୁମଣି ଚୂଳାଗ୍ର କରି ଆଗରୁ ତେଲ ବୋଳି ହୋଇ ଆସିଥିଲେ । ଭଣ୍ଡାର ଘରେ ପଶି ଯେତେ ବଡ଼ ବଡ଼ ଆଳୁ ଥିଲା ସେଗୁଡ଼ିକୁ ଅଲଗା କରିଦେଲେ । ରାଜା ଘର ବେଠିଆ ସେଗୁଡ଼ିକୁ ଭାରରେ ବୋହି ଯଦୁମଣିଙ୍କ ଘରେ ଦେଇ ଆସିଲେ ।

# ଢୋଲଟାଏ ଚାଲିଛି

କୌଣସି କାରଣରୁ ନୂଆଗଡ଼ ରାଜା ବନାୟକ ମାନଧାତା ଯଦୁମଣିଙ୍କ ଉପରେ ଭାରି ଖପା ହେଲେ । ରାଗ ଏତେ ବଢ଼ିଗଲା ଯେ ସେ ଆଉ ଯଦୁମଣିଙ୍କ ମୁହଁ ଚାହିଁବେ ନାହିଁ ବୋଲି କହିଦେଲେ ।

ଯଦୁମଣି ଆଉ ସେ ଦନଠୁଁ ରାଜବାଟି ଆଡ଼େ ଗଲେ ନାହିଁ ।

ଦେଖୁ ଦେଖୁ ରଥଯାତ୍ରା ସମୟ ଆସିଗଲା । ଯଦୁମଣି ତ ଜଗନ୍ନାଥଙ୍କ ଚାକର । ରଥଟଣାବେଳେ ସେ ରଥସାଙ୍ଗରେ ଯିବା ବାନ୍ଧି । ଯଦୁମଣି ବଡ଼ ଅଡ଼ୁଆରେ ପଡ଼ିଲେ । ତାଙ୍କର ଭୟ ହେଲା ଯେ ଯେମିତି ହେଲେ ସେ ରାଜାଙ୍କ ଆଖିରେ ପଡ଼ିଯିବେ । ଏ ସମୟରେ ଦେଖିଲେ ଜଣକ ପିଣ୍ଡାରେ କଣା ଢୋଲଟାଏ ଥୁଆ ହୋଇଛି । ଆଉ କାଳ ବଳମ୍ବ ନକରି ସେ ଢୋଲ ଭିତରେ ପଶି ତାକୁ ମୁଣ୍ଡେଇ ଚାଲିଲେ ।

ରଥଯାତ୍ରାରେ କାହିଁରୁ କଣ ଭିଡ଼ । ଗହଳ ଭିତରେ ଢୋଲଟାଏ ଚାଲିବା ଦେଖି ସମସ୍ତେ ତାଟକା । ବଡ଼ଦାଣ୍ଡରେ ରଥ ଚାଲିଛି । ରାଜାଙ୍କ ବଜୟ ପଟୁଆର ଚାଲିଛି । ତା' ସାଙ୍ଗରେ ଢୋଲଟାଏ ବ ଧୀରେ ଧୀରେ ଚାଲିଛି ।

ଛୋଟ ଛୋଟ ପିଲାଙ୍କ ମନରେ ଭାରି ଆନନ୍ଦ । ହରିବୋଲ ପକେଇ ଢୋଲକୁ ଘେରେଇ ହୋଇ ଚାଲିଛନ୍ତି । ପିଣ୍ଡା ଉପରେ ଝିଅ ବୋହୂମାନେ ହସରେ ଫାଟି ପଡ଼ୁଛନ୍ତି ।

ଏକଥା ଦେଖି ରାଜା କାରଣ ଜାଣିବାକୁ ଚାହିଁଲେ । ଡୋଲି ପାଖକୁ ଯାଇ ପଚାରିଲେ—ତୁମେ କିଏ ?

ଯଦୁମଣି ଡୋଲି ଭିତରେ ଥାଇ କହିଲେ "ମଣିମା, ମୁଁ ଯଦୁମଣି । ଛାମୁଁ ମୁହଁ ଚାହିଁବେନାହିଁ ବୋଲି କହିଥିଲେ । ମୁଁ ଆଉ କ'ଣ କରନ୍ତି ? ଛାମୁଁଙ୍କ ନଜରରୁ ନିଜକୁ ଲୁଚାଇ ରଖିବା ପାଇଁ ମୁଁ ଡୋଲି ମୁଣ୍ଡେଇ ଚାଲିଛି ।" ରାଜା ବି ଅନେକ ଦିନ ହେଲି ଯଦୁମଣିଙ୍କୁ ନଦେଖି ଦୁଃଖମନରେ ଥିଲେ । ସେ ତତ୍‌କ୍ଷଣାତ୍ ଯଦୁମଣିଙ୍କୁ କହିଲେ "ହେଉ ଏବେ ମୁହଁ ଦେଖାଅ ।"

ଯଦୁମଣି ମୁହଁ ଖୋଲିଲେ ।

ଉପରେ ରାଜା ଯଦୁମଣିଙ୍କୁ ଆଉ ଗୋଟିଏ ହାତୀ ପିଠିରେ ବସାଇ ପଟୁଆରରେ ଚାଲିଲେ ।



## ଘଣ୍ଟିକୁଣ୍ଡା ଭୁଣିଲେ ଉଠଇ ନାହିଁ

ନୂଆଗଡ଼ ରାଜା ବିନାୟକ ମାନଧାତା ଯଦୁମଣିଙ୍କୁ ଖଣ୍ଡିଏ ଦୋଫସଲ ନିଷ୍କର ଜମି ଦେବାପାଇଁ ବେବର୍ତ୍ତାଙ୍କୁ କହିଲେ । ଯଦୁମଣିଙ୍କ ମନ ଏଥିରେ ଭାରି ଖୁସି । ଜମି ଲାଳସାରେ ପାଞ୍ଚ ଦଶଥର ବେବର୍ତ୍ତାଙ୍କ ପାଖକୁ ଦୌଡ଼ିଲେଣି । କିନ୍ତୁ ଜମି କାହିଁ ? ଚାହୁଁ ଚାହୁଁ ବର୍ଷେ ବିତିଗଲା । ଶେଷକୁ ଯଦୁମଣି ରାଜାଙ୍କୁ ଜଣାଇବେ ବୋଲି

କହିବାରୁ ତାଙ୍କୁ ଯାହି ତାହି ଖଣ୍ଡେ ଜମି ମିଳିଗଲା ।

ଜମି ଖଣ୍ଡିଏ ପାଇବାପାଇଁ ଯେଉଁ ଆନନ୍ଦ, ପାଇଲାପରେ ତାହା ଆଉ ରହିଲା ନାହିଁ । ଯେଉଁ ଖଣ୍ଡିକ ମିଳିଲା ତାହା କେଉଁକାଳର ନିପଟ ପଡ଼ିଆଜମି । କେତେବର୍ଷ ହେଲା ସେଥିରେ କେହି ଫସଲ କରିନାହାନ୍ତି । ଏହାସବୁ ସେଇ ଦେବଦତ୍ତଙ୍କ କାଣ୍ଡ । ରାଜା ଯଦୁମଣିଙ୍କୁ ବେଶି ଭଲପାଇବାଟା ଦେବଦତ୍ତଙ୍କ ଦେହରେ ଯାଏନି । ତେଣୁ ସେ ପଡ଼ିଆ ଟାଙ୍ଗର ଜମିଖଣ୍ଡିକ ତାଙ୍କ ନାମରେ ଲେଖି ଦେଇଥିଲେ ।

ଏଥିରେ ଯଦୁମଣି ନିରାଶ ହୋଇ ରାଜାଙ୍କୁ ଗୋଟିଏ ଗୀତଲେଖି ଜଣାଇଲେ—

"ଦେଉ ଯାହା ଦେଲେ ହରଷେ
କରଣ ତା' କଲେ ବରଷେ
ବାଛି ବାଛି କରି ଦେଲେ ପଡ଼ିଆ
ଶ୍ରାବଣ ମାସରେ ଘାସେ ନଡ଼ିଆ
ଏମନ୍ତ ଭୂଇଁ
ଚିକୁଣ୍ଡା ବୁଣିଲେ ଉଠଇ ନାହିଁ ।"

କବିତାଟି ପଢ଼ି ରାଜା ରାଗରେ ଜଳିଗଲେ । ଦେବଦତ୍ତଙ୍କୁ ଡାକି ତିରସ୍କାର କଲେ ଓ ତୁରନ୍ତ ଏକବାଟି ଦୋଫସଲ ଜମି ଯଦୁମଣିଙ୍କ ନାମରେ ପଟ୍ଟା ଲେଖିଦେବାକୁ କହିଲେ ।

## ତୁମ୍ଭ ଦେହ ତମାମ ବିଷ୍ଠା

ଥରେ ପାଟରାଣୀ ଓ ଅନ୍ତଃପୁରର ଅନ୍ୟ ନାରୀମାନେ ବିଚାରକଲେ କେମିତି ଯଦୁମଣିଙ୍କୁ ଅପମାନ ଦିଆଇ ମଜା ଦେଖିବେ । ଏକଥାରେ ରାଜା ମଧ୍ୟ ରାଜି ହେଲେ । ସକାଳୁ ସକାଳୁ ଯଦୁମଣିଙ୍କ ପାଖକୁ ଡକରା ଗଲା । ଗାଧୁଆପାଧୁଆ ସାରି ଯଦୁମଣି ସଅଳ ଆସିଗଲେ । ରାଜା ତାଙ୍କ ଅପେକ୍ଷାରେ ଥା'ନ୍ତି । ଯଦୁମଣିଙ୍କୁ ଦେଖିପକାଇ ରାଜା ହସହସ ହୋଇ କହିଲେ—

"ଶୁଣ ଯଦୁମଣି, ଆମ୍ଭେ ପାହାନ୍ତା ସ୍ୱପ୍ନରେ ଦେଖିଲୁ ତୁମ୍ଭ ଦେହ ତମାମ ବିଷ୍ଠା ବୋଳା ହୋଇଛି ।" ଏକଥା ଶୁଣି ଭିତରୁ ଜୋରରେ ହସ ଶୁଭିଲା । ଏମିତ କଥାରେ ଯଦୁମଣି କ'ଣ ଛାଡ଼ି ଦେବା ଲୋକ । ସେ ମଧ୍ୟ ହସି ହସି ହାତଯୋଡ଼ି କହିଲେ—

"ସତ ମଣିମା, ମୁଁ ମଧ୍ୟ ପାହାନ୍ତା ସ୍ୱପ୍ନରେ ଦେଖିଲି ମୋ ଦେହରେ ବିଷ୍ଠା ବୋଳା ହୋଇଛି ଆଉ ଛାମୁଁଙ୍କ ଦେହରେ ମହାପ୍ରସାଦ ବୋଳା ହୋଇଛି । ସ୍ୱପ୍ନ କଥା ତ, ଛାମୁଁ ମୋ ଦେହକୁ ମୁଁ ଛାମୁଁଙ୍କ ଶ୍ରୀଅଙ୍ଗକୁ ଚାଟୁଛେ ।"

ଏହା ଶୁଣି ସମସ୍ତେ ହସରେ ଫାଟି ପଡ଼ିଲେ ।

ଆଉ ଦିନେ ରାଜା ମଜା ଦେଖିବା ପାଇଁ ସମସ୍ତଙ୍କ ଆଗରେ ଯଦୁମଣିଙ୍କୁ କହିଲେ—

"ଯଦୁମଣି, ତୁ କୁକୁର ।"

ଯଦୁମଣି ସାଙ୍ଗେ ସାଙ୍ଗେ କହିଲେ—ଛାମୁଁ ତୁଳସୀଗଛ ।

ସାଧାରଣତଃ ତୁଳସୀ ଗଛ ମୂଳରେ କୁକୁର ମୁତିଥାଏ । ଏହାର ଅର୍ଥ ବୁଝି ସମସ୍ତେ ହସି ଉଠିଲେ । ରାଜା ଯଦୁମଣିଙ୍କର ତୁରନ୍ତ ଜବାବରେ ଖୁସି ହୋଇ ଭୂରି ଭୋଜନ ସହ ପାଟ ଯଥା ପ୍ରଦାନ କଲେ ।



## ବୋପା ଶଳା-ପୁଅଶଳା

ଯଦୁମଣି କିଛି କାର୍ଯ୍ୟବ୍ୟସ୍ତ ଥାଇ କେତେଦିନ ହେଲା ଆଉ ଉଆସ ଆଡ଼େ ଯାଇ ନାହାନ୍ତି । ରାଜାଙ୍କ ପାଖରୁ କେତେଥର ଡାକରା ଆସିଲାଣି । କାମ ତ ଛାଡ଼ୁନି । ଅସୁବିଧା ଅଛି ବୋଲି ଖବର ପଠାଇ ରହିଯାନ୍ତି । ଦିନେ ରାତି ନ ପାହୁଣୁ ରାଜାଘର ଲୋକ ଆସି ହାଜର—ଛାମୁଁ ଡାକୁଛନ୍ତି ଆସ ।

କିଛି ସମୟ ପରେ ଯୁବରାଜ ସେଇବାଟେ ଯାଉ ଯାଉ କହି-ଗଲେ—ମହାପାତ୍ରେ ! ଚଞ୍ଚଳ ଆସ । ମୋର ଜରୁରୀ କାମ ଅଛି ।

ସେଦିନ ଯଦୁମଣି ନିଜ ଘର ଛପର କରାଉଥାନ୍ତି । ଏତିକି ବେଳେ ପୁଣି ରାଜାଙ୍କ ପାଖରୁ ଆଉ ଜଣେ ଡାକ ଆସିଲା । ଯଦୁମଣି ବଡ଼ ବିରକ୍ତିରେ କହି ପକାଇଲେ—

"ବୋପାଶଳାର ଯେମିତି ଅହଲ୍ଲା
ପୁଅ ଶଳାର ସେମିତି ଅହଲ୍ଲା ।"

ଯଦୁମଣି ଆଉ ଯାଆନ୍ତି କୁଆଡ଼େ । ଲୋକଟା କାନରେ ଏ କଥା ପଦକ ପଡ଼ିଯାଇଛି । ସେ ସଳଖେ ଯାଇ ରାଜାଙ୍କୁ ଜଣାଇଲା । ରାଜା ରାଗରେ ଏକାବେଳକେ ଅଗ୍ନିଶର୍ମା । ଡଗର ପଠାଇ ଯଦୁମଣିଙ୍କୁ ଧରିନେଲେ ।

ଯଦୁମଣି ହାରିବା ଲୋକ ନୁହନ୍ତି । ରାଜା ପଚାରିବାରୁ ସେ କହିଲେ ନା ମଣିମା ! ଛାମୁଙ୍କୁ ଏତେବଡ଼ କଥା କହିପାରିବି ! ଗାଁରେ ଲୋକମାନେ ରଜ ସଂକ୍ରାନ୍ତିକୁ ଘର ଛପର କରନ୍ତି । ମୁଁ ଆଗତୁରା କରୁଥିବାରୁ ମୂଲିଆମାନେ କାରଣ ପଚାରିଲେ । ସେଇଥିପାଇଁ କହିଲି—

"ପୁଅଣଲାର ଯେମିତି ଅହଙ୍କାର
ବୋପାଣଲାର ସେମିତି ଅହଙ୍କାର ।"

ଏହାର ଅର୍ଥ ହେଲା ହନୁମାନ (ମାଙ୍କଡ଼) ଡିଆଁ ଡେଇଁ କରି ଚାଳଟାକୁ ଏକବାରେ ଓଲଟାଇ ଦେଇ ଗଲେ । ତାଙ୍କ ବୋପା ପବନ ଦେବତା ଥିଲେ ଯେ ଆଉ ବଳକା ଯାହା କୁଟାକାଠି ଥିଲା ସେତକ ଉଡ଼ାଇ ନେଲେଣି । ଆଉ କରିବା କଣ ? ମେଘ ତ ଏକପାଣିଆ କରୁଛି । ବରଷା ଅସରାଏ ହେଲେ କଥା ସରିଯିବ । ଘର ଛପର ନ କଲେ ଚଳିବ କେମିତି ?

ରାଜା ଏକଥା ଶୁଣି ହସିଲେ ଓ ଯଦୁମଣିଙ୍କୁ ନୂଆ ମଠାଯୋଡ଼ ଦେଇ ବିଦାକଲେ ।

# ନିକିତି ତଉଲ

ନୂଆଗଡ଼ ଓ ଖଣ୍ଡପଡ଼ା ରାଜାଙ୍କ ମଧ୍ୟରେ ଭଲ ଭାବ ଥାଏ । ଦୁଇ ରାଜା ସତେ ଯେପରି ଦୁଇଭାଇ । ଥରେ ଖଣ୍ଡପଡ଼ା ରାଜା ରାଜଗିରି ପର୍ବତ ଖୋଲରେ ଗୋଟିଏ ବଣଭୋଜିର ଆୟୋଜନ କରି ନୂଆଗଡ଼ ରାଜା ବନାୟୁକ ମାନଧାତାଙ୍କୁ ନିମନ୍ତ୍ରଣ କଲେ ।

ବଣଭୋଜି ଦିନ ଦୁଇ ରାଜା ମହା ଆଡ଼ମ୍ବରରେ ଭୋଜି ସ୍ଥାନକୁ ଯାଉଥାନ୍ତି । ଖଣ୍ଡପଡ଼ା ରାଜା ହାତୀ ପିଠିରେ ବସି ପାହାଡ଼ ଉପର ରାସ୍ତାରେ ଯାଉଥିଲାବେଳେ ନୂଆଗଡ଼ ରାଜା ପାହାଡ଼ ତଳ ରାସ୍ତାରେ ସୁଆରରେ ଯାଉଥାନ୍ତି ।

ଦୁଇ ରାଜାଙ୍କ ଭିତରେ ସିନା ସାନ ବଡ଼ ବିଚାର ନାହିଁ । ମାତ୍ର ପାଖ ଲୋକମାନେ ଦୁହିଁଙ୍କୁ ଊଣା ଅଧିକେ ଦେଖନ୍ତି । ହଠାତ୍ ଖଣ୍ଡପଡ଼ାର ଜଣେ ପଣ୍ଡିତ ତାଙ୍କ ରାଜା ଉପର ରାସ୍ତାରେ ହାତୀ ପିଠିରେ ଯାଉଥିବାରୁ ସେ ବଡ଼ ବୋଲି ଶ୍ଳୋକଟିଏ ଗାଇଦେଲେ ।

ନୂଆଗଡ଼ ଦଳର ଲୋକଙ୍କ କାନରେ କଥାଟା ପଡ଼ିଗଲା । ସେମାନଙ୍କ ମଧ୍ୟରେ ଯଦୁମଣି ଥାନ୍ତି । ସେ ଛାଡ଼ିବା ଲୋକ ନୁହନ୍ତି । ହଠାତ୍ ଗଳା ଖଙ୍କାରି ଗାଇଲେ—

"ନିକିତି ତଉଲ ସାନବଡ଼କୁ,
ଭାରୀ ଯେଣୁ ସିଏ ଥୁଏ ତଳକୁ"

ଏ କଥା ଶୁଣି ଖଣ୍ଡପଡ଼ା ଦଳ ହତାଶ ହେଲେ । ଆଉ ଉପର ରାସ୍ତାରେ ନଯାଇ ତଳକୁ ଖସିଲେ । ଦୁଇ ରାଜା ସାଙ୍ଗ ହୋଇ ଭୋଜ ସ୍ଥାନକୁ ଗଲେ ।

( ନକଟ ତଉଲରେ ବେଶି ଓଜନ ଥିବା ପଟ ତଳକୁ ହୁଏ )



## ରାଧାମୋହନଙ୍କ ରାଗ

ଯଦୁମଣିଙ୍କ ପିତା ମୁକୁନ୍ଦ ମହାପାତ୍ର ଯେତେବେଳେ ମରଗଲେ ସେତେବେଳକୁ ତାଙ୍କର ଅବସ୍ଥା ସ୍ୱଚ୍ଛଳ ନୁହେଁ । ପିତାଙ୍କ ଶୁଦ୍ଧି କ୍ରିୟା କପର କରିବେ ? ହାତରେ କାଣି କଉଡ଼ିଟିଏ ନାହିଁ । ଚ୍ଛରିଦଗ ଅନ୍ଧାର । କାହାକୁ ବା ମାଗିବେ ? ଅଶୌଚ ଯୋଗୁଁ ନୂଆଗଡ଼ ରାଜାଙ୍କୁ ଭେଟିବା ନଷେଧ । ଶେଷକୁ କ'ଣ ଭାବ ରାତ ଅଧରେ ଗଡ଼କୁ ଚ୍ଛଲଲେ । ତାଙ୍କ ପିତା ତ ଚିତ୍ରକାର ଥିଲେ । ରାଧାମୋହନ ଠାକୁର ତାଙ୍କର ହାତରେ ଗଢ଼ା । ସେଇ ରାଧାମୋହନଙ୍କ ମନ୍ଦିର ଦ୍ୱାରରେ ଘୋଡ଼ହୋଇ ଜାକଜୁକ ହୋଇ ବସି ରହଲେ ।

ସକାଳୁ ସେବକମାନେ ଆସି ଦେଖନ୍ତ ଏ ଅବସ୍ଥା । ଯେତେ ଡାକଲେ ବ ଉତ୍ତର ନାହିଁ । ଠାକୁରଙ୍କ ନୀତକାନ୍ତ କପର ହେବ ? ସେବକମାନେ ସିଧା ଯାଇ ରାଜାଙ୍କୁ ଜଣାଇଲେ । ରାଜା ନଜେ ମନ୍ଦିର

ଦୁଆରେ ଆସି ଡାକବାରୁ ଯଦୁମଣି କହିଲେ—

"ମଣିମା, ମୋ ବାପା ମୁକୁନ୍ଦ ମହାପାତ୍ରଙ୍କ ଦୁଇଟିପୁଅ । ଗୋଟିଏ ରାଧାମୋହନ ଠାକୁର ଆଉଜଣେ ବିଚରା ଯଦୁମଣି । ସେ ଆଗ ରାଧାମୋହନଙ୍କୁ ଗଢ଼ିଥିଲେ, ପଛରେ ମୋତେ ଗଢ଼ିଲେ । ରାଧାମୋହନ ମୋ ବଡ଼ଭାଇ । ବାପା ଯେତେବେଳେ ମରିଗଲେ ଅଶୌଚ ଦୁହିଁଙ୍କୁ ଲାଗିବ । ଶୁଦ୍ଧି କ୍ରିୟା ଖର୍ଚ୍ଚ ମୁଁ ଏକା କାହିଁକି ବହନ କରିବ । ଏ ପର୍ଯ୍ୟନ୍ତ ତ ତାଙ୍କ କଥା ମୁଁ ବୁଝି ଆସିଲି । ରାଧାମୋହନ ଏବେ ଶୁଦ୍ଧି କ୍ରିୟା କଥା ବୁଝନ୍ତୁ ।"

ଚତୁର ଯଦୁମଣିଙ୍କ କଥା ଶୁଣି ରାଜା ହସିଲେ ଓ ଦୁଇଶହ ଟଙ୍କା ରାଧାମୋହନଙ୍କ ଭାଗ କହି ପିତୃକୃତ୍ୟ ତୁଲାଇବା ପାଇଁ ଦେଲେ ।



## ମାଆ ଆଉ ନାହାନ୍ତି

କେତେଦିନ ହେଲା ଝଡ଼ ଲାଗିରହିଛି । ଜାଳ ଅଭାବରୁ ଲୋକେ ବଡ଼ ହଇରାଣ ହରକତ ହେଲେଣି ।

ଯୋଗକୁ ସେଦିନ ଯଦୁମଣିଙ୍କ ଘରେ କାଠ ନଥାଏ ! ସ୍ତ୍ରୀ ଆସି ତମ ତମ ହୋଇ କହିଲେ—ରୋଷେଇ କରିବ କୋଉ ପହରକୁ ?

ଘରେ କାଠ ଖଣ୍ଡେ ତ ନାହିଁ । ଯଦୁମଣି ବଡ଼ ଅଡୁଆରେ ପଡ଼ିଲେ । ଏଣେ ପଇସାଟିଏ ବ ଅଣ୍ଟାରେ ନାହିଁ । ତଥାପି ସ୍ତ୍ରୀଙ୍କୁ ପ୍ରବୋଧି କହିଲେ, "ହଉ ଶାନ୍ତ ହୁଅ, ଏଇକ୍ଷଣି କାଠ ଆଣି ଦେଉଛି ।"

ଯଦୁମଣି ଗୋଟିଏ ଉପାୟ ପାଞ୍ଚିଲେ ।

ତାଙ୍କର ମାଆ କେତେଦିନ ହେଲା ବେମାର ପଡ଼ିଥାନ୍ତି । ମଲାଗଲା ଅବସ୍ଥା । ସେ ଘୋଡ଼ଘାଡ଼ ହୋଇ ଗୋଟିଏ କଣରେ ପଡ଼ିଥାନ୍ତି । ଯଦୁମଣି ଗୋଟିଏ ମୁନ୍ଦୁର ଆଣି ଗୋଡ଼ଠୁ ମୁଣ୍ଡ ପର୍ଯ୍ୟନ୍ତ ଘୋଡ଼ାଇ-ଦେଲେ । ଏମିତ ଜାଗାରେ ତାଙ୍କୁ ରଖିଲେ ଯେମିତ ସମସ୍ତଙ୍କ ନଜରରେ ପଡ଼ିବ । ତା'ପରେ ଦାଣ୍ଡ ପଟକୁ ଆସି ଭେ'କନା କାନ୍ଦିଉଠିଲେ । 'କ'ଣ ହେଲା' ବୋଲି ସାଇପଡ଼ିଶା ଆସି ଜମିଗଲେ । ଯଦୁମଣି କାନ୍ଦୁ କାନ୍ଦୁ କହିଲେ 'ମୋ ମାଆ ଆଉ ନାହାନ୍ତି ।' ଅବସ୍ଥା ଏପରି ଯେ ଶବଦାହ ପାଇଁ କାଠ ଦ'ଖଣ୍ଡି ବ ନାହିଁ । ଲୋକମାନେ ଯଦୁମଣିଙ୍କ କାନ୍ଦ ଶୁଣି ବ୍ୟାକୁଳ ହେଲେ । କୌଣସି ପ୍ରକାରେ ତ କାମ ଉଠିବ । ଯେଝା ବାଡ଼ିରୁ କିଏ ଖଣ୍ଡେ, କିଏ ଦ'ଖଣ୍ଡ କାଠ ଆଣି ଦୁଆରେ ପକାଇ ଦେଇଗଲେ । ଦେଖୁ ଦେଖୁ ଗାଡ଼ିଏ ଉପରେ କାଠ ଜମା ହୋଇଗଲା ।

ଯେଝା ଘରକୁ ଯିଏ ଗଲେଣି । ସେଇ ଝିପିଝିପି ବର୍ଷାରେ ଯଦୁମଣି କାଠତକ ଘରକୁ ବୋହିଲେ । ମାସ ଦୁଇଟାର କାଠ ଯୋଗାଡ଼ ହୋଇଗଲା ବୋଲି ଖୁସିଟାଏ ହେଲେ ।

# ଚମ୍ପୁ ଦାନ

ନୂଆଗଡ଼ ରାଜମାତାଙ୍କ ମୃତ୍ୟୁ ପରଠୁଁ ରାଜାଙ୍କ ମନରେ ସୁଖ ନଥାଏ । ମଲାବେଳେ ରାଜମାତାଙ୍କର ପାଚିଲା ଆମ୍ବ ଖାଇବାକୁ ଇଚ୍ଛା ହୋଇଥିଲା । ସେତେବେଳେ ତ ଆଶ୍ୱିନ ମାସ । ଅଦିନରେ ଆମ୍ବ ମିଳିବ କୁଆଡ଼ୁ ? ରାଜମାତାଙ୍କର ଏହି ଇଚ୍ଛା ଆଉ ପୂରଣ ହୋଇ ପାରିଲା ନାହିଁ ।

ରାଜମାତାଙ୍କର ବର୍ଷିକିଆକୁ ରାଜା ବ୍ରାହ୍ମଣମାନଙ୍କୁ ଡକାଇ ପ୍ରତିକାର ପଚାରିଲେ । ବ୍ରାହ୍ମଣମାନେ କହିଲେ—ପାଠ ଡାକୁଛି "ବ୍ରାହ୍ମଣ ମୁଖେ ମୋ ଆହାର" । ବ୍ରାହ୍ମଣଙ୍କୁ ଦେଲେ ମା' ପାଇଲେ ବୋଲି ବୁଝା ପଡ଼ିବ । ଆଶ୍ୱିନ ମାସରେ ତ ଆମ୍ବ ମିଳିବନାହିଁ । ତେଣୁ ଶହେଆଠ ବ୍ରାହ୍ମଣଙ୍କୁ ଗୋଟିଏ ଲେଖାଏଁ ସୁନା ଆମ୍ବ ଦାନ କରନ୍ତୁ ।" ରାଜା ଏଥିରେ ରାଜିହୋଇ ଶ୍ରାଦ୍ଧଦିନ ବ୍ରାହ୍ମଣମାନଙ୍କୁ ସୁନାଆମ୍ବ ଦାନ କଲେ ।

ଯଦୁମଣି ସେଦିନ ସେଠାରେ ଉପସ୍ଥିତ ଥିଲେ । ବ୍ରାହ୍ମଣମାନେ ଲୋଭବଶରୁ ଏକଥା କରିଛନ୍ତି ବୋଲି ତାଙ୍କର ଧାରଣା ହେଲା । ତେଣୁ ସେ ବ୍ରାହ୍ମଣଙ୍କ ଉପରେ କପର ଦାଉ ସାଧିବେ ଭାବୁଥାନ୍ତି ।

ଏହି ଘଟଣାର କିଛିଦିନ ପରେ ଯଦୁମଣିଙ୍କ ମା'ଙ୍କ ଶ୍ରାଦ୍ଧ ପଡ଼ିଲା । ଶ୍ରାଦ୍ଧକୁ ସେହି ଗଡ଼ରୁ ଆଠଜଣ ବ୍ରାହ୍ମଣଙ୍କୁ ନିମନ୍ତ୍ରଣ କରି ଆଣିଲେ । ଭୋଜନ ଆରମ୍ଭ ପୂର୍ବରୁ ସେ ଯୋଡ଼ ହସ୍ତରେ ବ୍ରାହ୍ମଣମାନଙ୍କୁ କହିଲେ—ଏ ଗରିବର ଗୋଟିଏ ଗୁହାରି ଶୁଣିବା ହେଉନ୍ତୁ । ମୋ ମା'ଙ୍କର ମୁଣ୍ଡବଥା ବେମାରି ଥିଲା । କପାଳରେ ଚନ୍ଦ୍ରୁ ଦେବାକୁ ମୋତେ ବାରମ୍ବାର କହିଥିଲେ । ଚନ୍ଦ୍ରୁ ଯୋଗାଡ଼ କରିବା ପୂର୍ବରୁ ମୁଣ୍ଡବଥା ରୋଗରେ ମାଆ ଚାଲିଗଲେ । ମୁଁ ଅଧମ ତାଙ୍କ ଇଚ୍ଛା ପୂରଣ କରି ପାରିଲି ନାହିଁ । ଆପଣ ଯେପରି ସୁନା ଆମ୍ବ ଦାନ ନେଇ ରାଜମାତାଙ୍କୁ ମୁକ୍ତି ଦେଲେ ଚନ୍ଦ୍ରୁଦାନ ଗ୍ରହଣ କରି ମୋ ମା'ଙ୍କୁ ସେପରି ମୁକ୍ତି ଦିଅନ୍ତୁ ।

ଏକଥା ଶୁଣି ବ୍ରାହ୍ମଣମାନେ ମୁହଁ ଚୁହାଁଚୁହିଁ ହେଲେ । ଆଗରୁ ଯଦୁମଣି ଦୁଇ ଚାରିଟା ଚଡ଼ୁକାଠି ନିଆଁରେ ତତେଇ ରଖିଥିଲେ । ତାହା ଆଣି ବ୍ରାହ୍ମଣମାନଙ୍କ କପାଳରେ ଚିଆଁ ଦେବାକୁ ଆରମ୍ଭ କରିଛନ୍ତି ତ ସେ ଯୁଆଡ଼େ ଛାଟିପିଟି ହୋଇ ପ୍ରାଣ ଭୟରେ ପଳାଇଲେ ।

## କାଠଗଡ଼

ନିଜର ଜନ୍ମମାଟି ପ୍ରତି ମମତା କାହାର ବା ନାହିଁ । ସେଥିପାଇଁ କହନ୍ତି—'ଜନନୀ ଜନ୍ମଭୂମୀ ସ୍ୱର୍ଗଠାରୁ ମଧ୍ୟ ବଡ଼' । ଯଦୁମଣିଙ୍କ ଜୀବନରୁ ଏହା ବାଦ୍ ଯିବ କିପରି ? ତାଙ୍କର ପ୍ରକୃତ ଜନ୍ମସ୍ଥାନ ଆଠଗଡ଼ । ସେ ବାପ ଅମଳରୁ ଇଟାମାଟିରେ ରହିଆସିଲେଣି । ମାତ୍ର ଆଠଗଡ଼ କଥା ତାଙ୍କ ମନରୁ ଯାଇନ । ଯେତେବେଳେ ସମୟ ପାଆନ୍ତି ଟିକିଏ ଯାଇ ବୁଲି ଆସନ୍ତି । କୁଟୁମ୍ବ, ବାନ୍ଧବ, ଘର, ଗଡ଼ର କେତକୀ ଝର ଓ ମନ୍ଦିରମାନ ଦେଖିଲେ ସତେ ଯେମିତି ତାଙ୍କର ପେଟ ପୂରିଯାଏ ।

ଏବେ ବଳ ଖସି ଗଲାଣି । ଯିବା ଆସିବା ଆଉ ସେପରି କରି-ପାରୁନାହାନ୍ତି । ମରିବାର କିଛିଦିନ ପୂର୍ବରୁ ଆଉ ସେ ଆଠଗଡ଼ ଯାଇପାରି ନାହାନ୍ତି । ଦିନେ ଏମିତି ଦାଣ୍ଡପିଣ୍ଡାରେ ବସିଛନ୍ତି, ତାଙ୍କର ଜଣେ ଅତି ପ୍ରିୟ ଲୋକ ପଚାରିଲେ—

'କହେ ମହାପାତ୍ରେ ! ଆଠଗଡ଼ ଯିବ ନାହିଁକି ?'

ଯଦୁମଣି ହଠାତ୍ କହି ପକାଇଲେ—"କାଠଗଡ଼ ତ ଖୋଜିଲାଣି, ଆଉ ଆଠଗଡ଼ ଯିବି କିଆଁ ?"

ସତକୁ ସତ ଏହାର କିଛି ଦିନ ପରେ ସେ ଇହଲୀଳା ସାଙ୍ଗ କଲେ ।



ଏହି ପୁସ୍ତିକାସ୍ଥିତ ହାସ୍ୟ କଥା ଗୁଡ଼ିକ ରସିକ ଶେଖର ଯଦୁମଣିଙ୍କର । ସତରେ ସେ ରସିକ । ଜୀବନର ସବୁ ଦିଗକୁ ଲକ୍ଷ୍ୟ କରି ସେ କହିଛନ୍ତି । ସ୍ତ୍ରୀ ସ୍ୱାମୀକୁ ସ୍ୱାମୀ ସ୍ତ୍ରୀକୁ, ରାଜା ପ୍ରଜାକୁ ପ୍ରଜା ରାଜାକୁ କହିଲାଭଳି ସମସ୍ତଙ୍କ କଥା ସେଥିରେ ଅଛି । ଖାଲି ହସେଇବାକୁ ସେ ଏ ସବୁ କହି ନାହାନ୍ତି । ତହିଁରେ ଖାଣ୍ଟି ସତ କଥା ଗୁଡ଼ିକୁ କହିଛନ୍ତି । ପ୍ରତି କଥାର ତୁରନ୍ତ ଜବାବ ଦେଇଛନ୍ତି । ସେ ଯାହାକୁ କହନ୍ତି ସେ ଟିକିଏ ମୁହଁ ମାରିଦିଏ ସତ, ମାତ୍ର ହୁଡ଼ିଲା ବାଟରୁ ଫେରିଆସେ । ଭଲକୁ ଭଲ ବୋଲି ବୁଝେ । ସେ ପୁଣି କେବଳ ଗୃହ ଗଉଡ଼ୁଣୀ ବା ଚଇତନିଆକୁ କହି ନାହାନ୍ତି । ସାଉକାର, ସର୍ବରାକାର, ଜମିଦାର, ରାଜାମହାରାଜା ସମସ୍ତଙ୍କୁ କହିଛନ୍ତି । ସେ ନିଜର 'ବୋପା ହେଲେ ବି ଛାଡ଼ି ନାହାନ୍ତି' । ଯେଉଁଠି ଭୁଲ ଭଟକା ଦେଖିଛନ୍ତି ସେ ଅଲବତ୍ କହିଛନ୍ତି । ତାଙ୍କର କଥା ଶୁଣି ମଣିଷ କାନ୍ଦୁ ପଛେ, ଆଗ ଟିକିଏ ହସିପକାଏ ।

୧୭୮୧ ମସିହାରେ ଯଦୁମଣି ଜନ୍ମ ହୋଇଥିଲେ ଆଠଗଡ଼ରେ । ମାତ୍ର ତାଙ୍କର ବାସସ୍ଥାନ ଥିଲା ଇଟାମାଟି । ଜାତିରେ ସେ ଥିଲେ ବଢ଼େଇ । ତାଙ୍କର ବାହାଦୁରୀ କେବଳ କାଠ ବା ଚିତ୍ରଶିଳ୍ପରେ ନୁହେଁ, କାବ୍ୟ ଶିଳ୍ପରେ ଥିଲା ଆହୁରି ବଡ଼ । ୧୮୬୬ ମସିହାରେ ଏହି ରସିକ କବି ମୃତ୍ୟୁବରଣ କରିଥିଲେ । ସେ ମରିଯାଇଛନ୍ତି ସତ, କିନ୍ତୁ କବି ଭାବରେ ସେ ଏ ଜାତି ପାଖରେ ସବୁଦିନ ପାଇଁ ଅମର ହୋଇ ରହିଛନ୍ତି ।

ଏହି ପୁସ୍ତକଟି ନବସାକ୍ଷର ମାନଙ୍କ ପାଇଁ ପ୍ରକାଶିତ । ଯଦି ଆପଣ ନବସାକ୍ଷର ଅଟନ୍ତି, ତେବେ ତଳେ ଆମେ ଆପଣଙ୍କ ଠାରୁ ଚାହିଁଥିବା ସୂଚନା ଗୋଟିଏ ଅଲଗା କାଗଜରେ ଲେଖି ଆମ ପାଖକୁ ପଠାନ୍ତୁ । ଏହା ଫଳରେ ଆମକୁ ଆହୁରି ଭଲ ପୁସ୍ତକ ପ୍ରକାଶ କରିବାରେ ସହଯୋଗ ମିଳିବ ।

1· ଆପଣଙ୍କ ନାମ

2· ଆପଣଙ୍କ ବୟସ

3· ଆପଣଙ୍କ ମାତୃଭାଷା

4· ଆପଣ କି କାମ କରନ୍ତି

5· ଆପଣଙ୍କ ମାସିକ ଆୟ

6· ଆପଣଙ୍କ ଠିକଣା

7· ସାକ୍ଷରତା ପ୍ରବେଶିକାର କେତୋଟି ଭାଗ ଆପଣ ପଢ଼ିଛନ୍ତି ?

8· ସାକ୍ଷରତାକୁ ଆପଣ କେଉଁ କାମରେ ଲଗାନ୍ତି ?

9· ଆପଣ ଖବରକାଗଜ ପଢ଼ନ୍ତି କି-କେବେକେବେ, ଅବସର ସମୟରେ ନା ନିୟମିତ ଭାବେ ?

10· ଆପଣ ପୁସ୍ତକ ପଢ଼ନ୍ତି କି - କେବେକେବେ, ଅବସର ସମୟରେ ନା ନିୟମିତ ଭାବେ ?

11· ଆପଣ କେଉଁ ବିଷୟ ପଢ଼ିବାକୁ ଭଲ ପାଆନ୍ତି ?

12· ଏହ ପୁସ୍ତକଟି ଆପଣଙ୍କୁ କିପରି ଲାଗିଲା ?

13· ଆପଣ ପ୍ରତି ମାସରେ ପୁସ୍ତକ କିଣିବାଲାଗି କେତେ ଟଙ୍କା ଖର୍ଚ୍ଚ କରି ପାରିବେ ?

ସୂଚନା ତଳେ ଲେଖାଥିବା ଠିକଣାରେ ପଠାନ୍ତୁ :

**ସଂପାଦକୀୟ ବିଭାଗ**

ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ଏ-5, ଗ୍ରୀନ୍ ପାର୍କ

ନୂଆଦିଲ୍ଲୀ - 110 016

Printed at Aravali Printers New Delhi-20

